# ଉତ୍କଳମଣି ଗୋପବନ୍ଧୁ





ଭାରତୀୟ ଜନତନ୍ତ୍ରର ପ୍ରଥମ ରାଷ୍ଟ୍ରପତି

## ଡାଃ ରାଜେନ୍ଦ୍ର ପ୍ରସାଦ

ଙ୍କର

## ଶୁଭ କାମନା

ଶ୍ରୀ ବୈଦ୍ୟନାଥ ଆୟୁର୍ବେଦ ଭବନ ପ୍ରାଇଭେଟ ଲିମିଟେଡ କଂଗ୍ରେସ-ପ୍ରଦର୍ଶନୀରେ ଭାରତୀୟ ଔଷଧ ଓ ଆୟୁର୍ବେଦକ ଷ୍ଟଲରେ ଚମତ୍କାର ବ୍ୟବସ୍ଥା କରିଥିଲେ । ମୁଁ ତାହା ଦେଖି ଓ ସେହି ସବୁ ବ୍ୟବସ୍ଥା ଦେଖି ଅତ୍ୟନ୍ତ ଖୁସି ହୋଇଅଛି । ଆୟୁର୍ବେଦର ପୁନରୁଦ୍ଧାର ଅତ୍ୟନ୍ତ ଆବଶ୍ୟକ ଅଟେ ଓ ଏହି ପ୍ରକାର ବ୍ୟବସ୍ଥା ଦ୍ୱାରା ବହୁତ ଲାଭ ହେବ । ମୁଁ ଏହି ସଂସ୍ଥାର ସଫଳତା କାମନା କରୁଅଛି ।

# ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ

ଭାରତ ଜାତୀୟ କଂଗ୍ରେସର ୬୮ତମ ଅଧିବେଶନ ଐତିହାସିକ ପ୍ରସିଦ୍ଧ ଭୁବନେଶ୍ୱର ଠାରେ ବସୁଛି । କଂଗ୍ରେସ ମଣ୍ଡପ ଗୋପବନ୍ଧୁ ନଗର ନାମରେ ନାମିତ । ପଣ୍ଡିତ ଗୋପବନ୍ଧୁଙ୍କ ସଂକ୍ଷିପ୍ତ ପରିଚୟ ଦେବା ଏଠାରେ ଏକାନ୍ତ ଆବଶ୍ୟକ ।

ଉତ୍କଳମଣି ଥିଲେ ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନର ଆଧାର । ତାଙ୍କର ସାଧନା ଆଜି ସିଦ୍ଧିଲାଭ କରିଛି । ଓଡ଼ିଶାର ଚାରିଆଡ଼େ ଆଜି ଉନ୍ନୟନ । ହୀରାକୁଦ, ରାଉରକେଲା, ପାରାଦ୍ୱୀପ, ନାବକ ପ୍ରଭୃତି ଯେଉଁ-ସବୁ ଉନ୍ନୟନମୂଳକ କାର୍ଯ୍ୟର ସୂତ୍ରପାତ ହେଉଛି, ସେସବୁ ଫଳବତୀ ହେଲେ ଓଡ଼ିଶାର ରଙ୍ଗ ବଦଳି ଯିବ । ଓଡ଼ିଶାର ଚିର ଦାରିଦ୍ର୍ୟର ଯେ ଅବସାନ ଘଟିବ ଏହା ସୁନିଶ୍ଚିତ ।

ବୈଦ୍ୟନାଥ ଆୟୁର୍ବେଦ ଭବନ ତା'ର ନିଜ ଅଭିଜ୍ଞତାରୁ ଜାଣେ ଯେ ସାଧନା କଦାପି ବ୍ୟର୍ଥ ହୁଏ ନାହିଁ ଏବଂ ସେହି ସିଦ୍ଧିଲାଭ ପଥରେ ପ୍ରଥମ ପ୍ରଥମ ଯେଉଁ ସବୁ ପ୍ରତିବନ୍ଧକ ଦେଖାଦିଏ, ତାହା ଧୀରେ ଧୀରେ ଅପସରି ଯାଏ । ଏହାର ମୂର୍ତ୍ତି ପ୍ରତୀକ ହେଲେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ।

ଗୋପବନ୍ଧୁଙ୍କର ଜନ୍ମ ଏଇ ପୁରୀ ଜିଲ୍ଲାସ୍ଥ ସୁଆଣ୍ଡୋ ଗ୍ରାମର ଗୋଟିଏ ଦରିଦ୍ର ବ୍ରାହ୍ମଣ ପରିବାରରେ । ପିତାଙ୍କ ନାମ ଦୈତାରି ଦାଶ ଓ ମାତାଙ୍କ ନାମ ସ୍ୱର୍ଣ୍ଣମୟୀ ଦେବୀ । ଗୋପବନ୍ଧୁଙ୍କ ପିତା ମୁକ୍ତିଆର ଥିଲେ । ନୂଆ ଧରଣର ଶିକ୍ଷାପ୍ରତି ତାଙ୍କର ଆଗ୍ରହ ଜନ୍ମିଥିଲା । ସେ ପୁଅକୁ ଇଂରାଜି ପଢ଼ାଇବା ଲାଗି ଚେଷ୍ଟାକଲେ । ଅବଶେଷରେ ଗୋପବନ୍ଧୁ ଓକିଲ ହେଲେ । ମନୁଷ୍ୟ ଚିନ୍ତାକରେ ଏକ, ଭଗବାନ କରନ୍ତି ଅନ୍ୟ । ଗୋପବନ୍ଧୁ ମ ନବ ଜାତିର କଲ୍ୟାଣ ପାଇଁ ଈଶ୍ୱର ପ୍ରେରିତ, ସେ ଯଥେଷ୍ଟ ଟଙ୍କା ପଇସା ରୋଜଗାର କରି ବିଳାସ ବ୍ୟସନରେ ବୁଡ଼ି ରହନ୍ତେ ବା କାହିଁକି ? ସର୍ବଜନ ସୁଖପାଇଁ ତାଙ୍କର ପ୍ରାଣ ସବୁବେଳେ କାନ୍ଦି ଉଠିଲା । ସେ ବେଳ ଉଣ୍ଡୁ-ଥିଲେ—ସୁଯୋଗ ଆସିଲାକ୍ଷଣି କାର୍ଯ୍ୟରେ ବାହାରିବେ ବୋଲି । କଥାରେ ଅଛି—ଯାଦୃଶୀର୍ଭାବନାର୍ଯସ୍ୟ ସିଦ୍ଧି ଭବତି ତାଦୃଶୀ ।

୧୯୨୦ ରେ ଦୁର୍ଭିକ୍ଷ ପଡ଼ିଲା ପୁରୀ ଜିଲ୍ଲାରେ । ମହାତ୍ମା ଗାନ୍ଧୀ ଓ ଭଇ ଅମୃତଲାଲ ଠାକୁରଙ୍କର ସାହାଯ୍ୟ ଓ ସହାନୁଭୂତିରେ ସତ୍ୟବାଦୀ ସ୍କୁଲର ଛାତ୍ରମାନଙ୍କୁ ନେଇ ଯେଉଁ କାର୍ଯ୍ୟ ଆରମ୍ଭ କରିଥିଲେ, ତାହା ଚିରଦିନ ଭାରତ ଇତିହାସରେ ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ହୋଇ ରହିବ । ସେ କାଉନ୍‌ସିଲ ଗୃହରେ ଦୁର୍ଭିକ୍ଷ ପୀଡ଼ିତ ଅସ୍ଥି କଙ୍କାଳସାର ଦୁସ୍ଥ ଉତ୍କଳବାସୀଙ୍କ ଛବି ଏବଂ ସେମାନଙ୍କର ଖାଦ୍ୟ ମୁଠିଶାଗ ଲାଟ ସଭାର ମେମ୍ବରମାନଙ୍କୁ ଦେଖାଇ ବିକଳଭାବରେ ଯେଉଁ ବକ୍ତୃତା ଦେଇଥିଲେ, ତାହା ଭୁଲି ହେବ ନାହିଁ । ଅଶ୍ରୁପୂର୍ଣ୍ଣ ନୟନ ଓ କାନ୍ଦକାନ୍ଦ ସ୍ୱରରେ ଇଂରାଜ ଶାସକ ଲାଟ ସାହେବଙ୍କୁ କହିଥିଲେ "ରାଜ୍ୟ ପାପ ରାଜା ମୁଣ୍ଡରେ । ଆପଣ ରାଜାର ପ୍ରତିନିଧି-ଭାବରେ ଏଠି ବସିଛନ୍ତି । ଦରିଦ୍ର କୃଷକ ଦ୍ୱାରା ପ୍ରଦତ୍ତ ରାଜସ୍ୱରେ ଆପଣଙ୍କ ସରକାର ଚାଲୁଛି । ସେଇ ଦରିଦ୍ର ଲୋକେ ଯେତେବେଳେ ନଖାଇ ନପିଇ, ଅଖାଦ୍ୟ ଖାଇ ରୋଗରେ ମରି ଯାଉଛନ୍ତି ସେତେବେଳେ ଆପଣ ପଦେ ଟିକିଏ ସହାନୁଭୂତି ସୂଚକ ଆଚରଣ ନ ଦେଖାନ୍ତି, ସେମାନଙ୍କ ପାଖରେ ଏ ବିପଦ ସମୟରେ ଟିକିଏ ଠିଆ ନ ହୁଅନ୍ତି, ସେମାନଙ୍କୁ

ଏ ବିପଦରୁ ରକ୍ଷା ନକରନ୍ତୁ, ତାହାହେଲେ ଜାଣି ରଖନ୍ତୁ ଆପଣ ନରହତ୍ୟା ପାତକରେ ଲିପ୍ତ ହେବେ। ଏ ପାତକର ଭୟାବହ ପରିଣାମ ଆପଣଙ୍କୁ ଭୋଗିବାକୁ ପଡ଼ିବ, ସ୍ୟାର ଏଡ୍‌ୱାର୍ଡ ଗୋପବନ୍ଧୁଙ୍କ ଏତାଦୃଶ ବାଣୀରେ ତରଳି ଗଲେ। ସେ ଘରେ ଘରେ ପଶି ଯେତେବେଳେ ଲୋକଙ୍କ ଦୁଃଖ ଦେଖିଲେ, ସେତେବେଳେ ସ୍ୱୀକାର କଲେ, "ଗୋପବନ୍ଧୁ, ଲୋକଙ୍କ ପାଇଁ ଯାହା କରାଯିବା କଥା ତାହା କରାଯାଇ ପାରି ନାହିଁ।" ଗୋପବନ୍ଧୁ କେବଳ ଏତକରେ କ୍ଷାନ୍ତ ନ ହୋଇ ଲକ୍ଷାଧିକ ଟଙ୍କା ଚାନ୍ଦା ଉଠାଇ ସେ ନିଜେ ଓ ତାଙ୍କ ପ୍ରତିଷ୍ଠିତ ସମାଜ ଖବର କାଗଜ ସାହାଯ୍ୟରେ ଜନସାଧାରଣଙ୍କ ଦୁଃଖ ଲୋକଲୋଚନକୁ ଆଣି ତାର ପ୍ରତିକାରର ନାନା ପନ୍ଥାମାନ ବାହାର କରିଥିଲେ।

୧୯୨୭ ମସିହା ଫେବୃୟାରୀ ମାସରେ ପଣ୍ଡିତ ଗୋପବନ୍ଧୁଙ୍କର, ପୂଜ୍ୟ-ପାଦ ଭାରତୀୟ ନେତା ପଞ୍ଜାବ କେଶରୀ ଲାଲା ଲାଜପତରାୟଙ୍କ ସହିତ

କଲିକତାରେ ସାକ୍ଷାତ ହୁଏ । ସେ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା କଥା ତାଙ୍କ ଆଗରେ କହି ଓଡ଼ିଶାର ଭବିଷ୍ୟତ କର୍ମପନ୍ଥା ସ୍ଥିର କରିବା ପାଇଁ ତାଙ୍କୁ ସାହାଯ୍ୟ କରିବା ଲାଗି କହନ୍ତେ ସେ ଉତ୍ତରରେ କହିଥିଲେ "ଗୋପବନ୍ଧୁ, ଓଡିଶା ତୁମ ଭଳି କର୍ମୀ ପାଇଛି ଆଉ ଭାବନା କ'ଣ ? କାହାରି କାର୍ଯ୍ୟ କଦାପି ବନ୍ଦ ରହିବ ନାହିଁ, ଯେ କୌଣସି ପ୍ରକାରେ ଚଳିବ । ତୁମେ ଆମ ଲୋକସମାଜର ସଭ୍ୟ ହେବ କି ? ତୁମକୁ ପାଇଲେ ଆମେ ନିଜକୁ ଭାଗ୍ୟବାନ ମଣିବୁ ବୋଲି ମୋର ବିଶ୍ୱାସ । ଏହାଦ୍ୱାରା ଓଡ଼ିଶାର କାର୍ଯ୍ୟ ସୁଗମ ହେବ ।" ଗୋପବନ୍ଧୁ ପୂଜ୍ୟପାଦ ଲାଲାଜୀଙ୍କର ଅନୁରୋଧ ଉପେକ୍ଷା କରି ପାରିଲେ ନାହିଁ । ସେ ଶେଷ ଜୀବନରେ ମହାତ୍ମା ଗାନ୍ଧୀ ଓ ଲାଲାଜୀଙ୍କୁ ପୃଷ୍ଟପୋଷକ ରୂପେ ପାଇ, ଉତ୍କଳରେ ଚରଖା, ବନ୍ୟା ସାହାଯ୍ୟ, ବିଧବାଶ୍ରମ ସ୍ଥାପନ, ଅସ୍ପୃଶ୍ୟ ଜାତିର ସେବା ଓ ଗ୍ରାମ ସଗଠନ ପ୍ରଭୃତି କାର୍ଯ୍ୟ କରିବା ପାଇଁ ସଂକଳ୍ପ କରିଥିଲେ । କିନ୍ତୁ ତାଙ୍କର ଏ ସବୁ କାର୍ଯ୍ୟରେ ୧୯୨୭ ସାଲରେ ବନ୍ୟା ଘୋର ପ୍ରତିବନ୍ଧକ ସୃଷ୍ଟି କଲା । ସେତେବେଳେ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ଭଗ୍ନ ସ୍ୱାସ୍ଥ୍ୟ ତାଙ୍କୁ କର୍ତ୍ତବ୍ୟଚ୍ୟୁତ କରିପାରିଲା ନାହିଁ । ୧୯୨୮ ମସିହା ଜୁନ୍ ତା୧୭ରିଖ ସନ୍ଧ୍ୟା ୭।୨୫ ମିନିଟରେ ଗୋପବନ୍ଧୁ ଭାରତବାସୀଙ୍କୁ ଦୁଃଖ ସାଗରରେ ଭସାଇ ଦେଇ ଇହଧାମ ତ୍ୟାଗ କଲେ । ତାଙ୍କ ମୃତ୍ୟୁରେ କବି କହିଛନ୍ତି —

"ମରିଛି ଗୋପବନ୍ଧୁ ମରିଛି ସତେ,
ମରିଛି ବୋଲି ଭିଲେ ନ ହୁଏ ପ୍ରତେ ।
ମରିକପାରେ ଏଡ଼େ କୀରତିମାନ,
କରିଅଛି ମରଣେ ତା ଉଚ୍ଚ ସ୍ଥାନ ॥"



ଉତ୍କଳମଣି ନିଜର ଦେଶବାସୀଙ୍କୁ କିପରି ନିଜର କରି ପାରିଥିଲେ ନିମ୍ନ କବିତାଟି ତାର ଜ୍ୱଳନ୍ତ ଉଦାହରଣ ।

'ହେ ଉତ୍କଳ ବାସୀ ମୋ ଭ୍ରାତ ଭଉଣୀ,
କରିଅଛ ସ୍ନେହେ ମୋତେ ଚିର ଋଣୀ ।
ଯାଇ ଅଛି ଯହିଁ ପାଇଛି ଆଦର,
ଶୁଣିଛି ଶ୍ରଦ୍ଧାରେ ସନ୍ଦେଶ ମୋହର ।

ତୁମ୍ଭ ହାତେ ମୋର ଦୁର୍ବଳ ପ୍ରୟାସ
ଜାଣେ କରିଅଛ ମନେ ଏ ବିଶ୍ୱାସ ।

ମୋ ସମ୍ବଳ ତୁମ୍ଭ ସେନେହ ଶରଧା
ସୁମରୁଥିବ ମୁଁ ଯହିଁ ଥିଲେ ସଦା ।

କିନ୍ତୁ ମୋ ବିରହେ କେବଳ ଶୋଚନା
କାହିଁରେ ନ ଦେବ ଏ ପ୍ରାଣେ ସାନ୍ତ୍ୱନା ।

ଦେଖିଛୁ ଉତ୍କଳେ ଯେ ଦୃଶ୍ୟ ନୟନେ ।
ଉଠିଏ ତା ଭୂତ ପରିଚୟେ ସ୍ୱପନେ ।

କେତେ କେତେ ସୃଷ୍ଟି ଭଲ ଭଲ ଲୋକ
ନ ପାନ୍ତି ଦବେଲା ସେଠ ପୁରି ଶୋକ ।

ଥିଲେ ଯେଉଁ ମନ୍ତ୍ରୀ ଉତ୍କଳ-ସୈନିକ
ପାଇକ ପ୍ରଧାନ ମାଗୁଛନ୍ତି ଭିକ ।

ଦେହେ ନାହିଁ ମାଂସ ଦୋହଲୁଛୁ କଣ୍ଠା
ଅନାହାରେ ଆହା ନ ଉଠଇ ଅଣ୍ଠା ।

ଅର୍ଜନ୍ତି ଯା ଭୂଣ୍ଡେ ମାରି ମୁଣ୍ଡ ଫାଳ
ଦୁଷ୍ଟ ମହାଜନ ଗ୍ରାମ କଣ୍ଟିଆଳ ।

ପ୍ରଜା ରକ୍ତ ଶୋଷି କେତେ ଜମିଦାର
ହରନ୍ତି ସର୍ବସ୍ୱ ବଜାଇ ପାହାର ।

ଉତ୍କଳର କେତେ କନ୍ୟା ନାରଖାର
ନ କରନ୍ତି ପେଟ ପୁରାଇ ଆହାର ।

ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।

ଟଙ୍କସ୍ତା ନ ପାଇ ଘର କଣେ ପଡ଼ି
ରୋଗେ ଅନାହାରେ କେବା ମରେ ଗଡ଼ି ।

ଉଦର ଜ୍ୱାଳାରେ କେତେ ନର ନାରୀ
ଛାଡ଼ି ଘରଦ୍ୱାର ଯାଆନ୍ତି ବାହାର ।
ପଡ଼ିଅଛି ଡହ କାହିଁବା ଗୁଳଆ
ଶ୍ମଶାନ ପର୍ଯ୍ୟେ ଦଶେ ନଛଟିଆ ।

ପଶିଗଲେ ଗ୍ରାମେ ନ ଶୁଭେ ଶବ୍ଦ
ବେଦମନ୍ତ୍ର କିବା ଭାଗବତ ପଦ ।

ଗ୍ରାମବାସୀଗଣେ ନାହିଁ ପୂର୍ବମେଳ
ଶିଶୁ ଖେଳେ ଦାଣ୍ଡେ ନ ହୁଏ ଉଜ୍ଜ୍ୱଳ ।
ଯାଉଅଛି ଭାଙ୍ଗି ଗ୍ରାମ ଦେବାଳୟ
ପୂରିଲଣି ପଙ୍କବଧେ ଜଳାଶୟ ।





ଗ୍ରାମର ଗୋକୁଳ କ୍ରମେ ଅତିକ୍ଷୀଣ
ଯେତଣେ ଅନାଇବ ସବୁ ଶ୍ରୀହୀନ ।
ନାହିଁ ଜନମୁଖେ ସତ୍ୟ ଧର୍ମ କାନ୍ତି
ନାହିଁ ହୃଦେ ଶୌଚ, ପ୍ରାଣେ ସ୍ନେହ ଶାନ୍ତି
ପର ପ୍ରବଞ୍ଚନା କରେଷ୍ଟ ବଗୃର
ଗ୍ରାମ ମୁଖିଆଙ୍କ ନିତ୍ୟ କାରବାର ।
ଆତ୍ମୀୟ ସୋଦର ପ୍ରତିବେଶୀ ସଙ୍ଗ
ନୀଚ ସ୍ୱାର୍ଥ ଲଗି ଲଗାନ୍ତି କଳହ ।
ରାଜଦରବାରେ ବୃଥା ଅର୍ଥକ୍ଷୟ ।
ଶେଷେ ସମଦଶା ଜୟ ପରାଜୟ ।

× × ×

ଦେଖିଣ ବିଦେଶୀ ଦ୍ରବ୍ୟ ଝଲମଲ
ଲୋଡ଼ନ୍ତି ପତଙ୍ଗ ଯେସନେ ଅନଳ ।
ହେଉଅଛୁ କଂସା ହଡ଼ା ଜମ୍ପବକା
ବୁଡ଼ିଲାଣି କେତେ କାଠର ଜୀବିକା ।
ଏହା ପରେ କ୍ରମେ ବଢ଼େ କରଦାଉ,
ଏ ଦଶା ରହିବ କେତେ ଦିନ ଆଉ ।

× × ×

ଫେରିବ ଏ ଦଶା ସୁଖୀ ହେବ ପ୍ରଜା
ଉପୁନା ଧାନ କି ସତେ ହେବ ଗଜା ।
ଉତ୍କଳର ଏହି ଚଷା ନିଦ ଭୁଣ
ନାଚିବ ମୋ ଆଖି ଆଗେ ପୁଣି ପୁଣି ।

× × ×

ଗୋପବନ୍ଧୁ ଭଳି ସୁବକ୍ତା ନ ଥିଲେ କ'ଣ ହେବ, ମାନବ ଦରଦୀ ଗୋପବନ୍ଧୁଙ୍କ ପ୍ରାଣ ସବୁବେଳେ ଲୋକର ଦୁଃଖରେ ତରଳି ଯାଉଥିଲା । ଲୋକ ଦୁଃଖ ଶୁଣି ସେ ପିଲାଙ୍କ ପରି କାନ୍ଦି ପକାଉଥିଲେ । ବନ୍ୟା ସମୟରେ ଥରେ ସେ କଲିକତାକୁ ଆସିଥିଲେ । ଯାହାଙ୍କର ଅତିଥି ହୋଇଥିଲେ, ସେ ଭଲ ଖାଦ୍ୟପେୟ ଆଣି ଦେବାରୁ ଗୋପବନ୍ଧୁ ନ ଖାଇ ଭେଁ ଭେଁ କରି କାନ୍ଦି ଉଠିଲେ । ଅତିଥି ସେବକ କାରଣ ନ ବୁଝି ପାରି ଖୁବ ବିପଦ ମଣିଲେ । ସେ ଗୋପବନ୍ଧୁଙ୍କୁ ପଚାରିଲେ "ମୋର କିଛି ତ୍ରୁଟି ହୋଇ-ଥିଲେ କ୍ଷମା ଦିଅନ୍ତୁ" ଉତ୍ତରରେ ଗୋପବନ୍ଧୁ କହିଲେ "ଆପଣଙ୍କର ତ୍ରୁଟି କିଛି ହୋଇ ନାହିଁ । ମୋ ଉତ୍କଳବାସୀ ବନ୍ୟାରେ ଉପାସରେ ରହିଛନ୍ତି, ଶାଗପଖାଳ ଖାଇବାକୁ ପାଉନାହାନ୍ତି । ଏପରି ଅବସ୍ଥାରେ ମୁ କିପରି ଏସବୁ ଖାଇବି । ଆପଣ ଯଦି ମୋତେ ଏପରି ଖାଇବାକୁ ନଦେଇ ମୋର ବନ୍ୟା ପ୍ରପୀଡ଼ିତ ଭାଇମାନଙ୍କ ପାଇଁ ଏସବୁ ପଠାଇ ଦେଇଥାନ୍ତେ, ତାହେଲେ ମୁଁ ଖୁସୀ ହୋଇଥାନ୍ତି ।"





ଗୋପବନ୍ଧୁ କେବଳ ମୃଦୂନ କୁସୁମାଦପି ନ ଥିଲେ, ସେ ଥିଲେ ବଜ୍ରାଦପି ଗରୀୟସୀ । ତାର ପ୍ରମାଣ ତାଙ୍କର ଏହି ଲଇନ କେତୋଟିରୁ ପାଠକେ ସହଜରେ ହୃଦୟଙ୍ଗମ କରିପାରିବେ ।

# ବନ୍ଦୀର ଆତ୍ମକଥା

‘ଦେଶବାସୀ ବନ୍ଧୁ ଆତ୍ମୀୟ ସୋଦର, କାରାଦଣ୍ଡେ ମୋର ହେଲ କି କାତର ?
ଥିଲା ଏହା ଆଗୁଁ ଜଣାଶୁଣା କଥା, ସେଥିପାଇଁ ତେବେ କପାଁ ମନେ ବ୍ୟଥା ?
କାତରତା ସିନା କାପୁରୁଷପଣ, ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ, ନ ମରେ ସେ କେବେଁ ପରାଣ ଆତଙ୍କେ ।
ଜାଣିଛୁ, ଲଢ଼ିଛୁ ଏ ଶାନ୍ତ-ସମର, ନାହିଁ ଏଥି ତୋପ ହାତହତିଆର ।
ବଳ ବା ବିଭବ ନାହିଁ ଏଥି ଲୋଡ଼: ।ହିଁ ଲୋଡ଼ା ଯାନ ରଥ ହାତୀ ଘୋଡ଼ା ।
ଆଧ୍ୟାତ୍ମିକ ବଳେ ଲଗିଛୁ ଲଢ଼ାଇ, ଭାଙ୍ଗିବାକୁ ପଶୁବଳର ବଢ଼ାଇ ।
ଛାଡ଼ି ଧନ ଆଶା ଘର ଦ୍ୱାର-ମାୟା, ଅସଙ୍ଗଶସ୍ତ୍ରେ ଯେ ସାଜିଅଛୁ କାୟା ।
ଅହିଂସା ବଳରେ ଯେହୁ ବଳୀୟାନ, ଏ ରଣପ୍ରାଙ୍ଗଣେ ତା’ର ଏକା ସ୍ଥାନ ।
ଏଥିରେ ପ୍ରଥମ ଫଳ କାରାଦଣ୍ଡ, ପଛେ ହୋଇପାରେ ଦେହ ଖଣ୍ଡ ଖଣ୍ଡ ।
ବୁଝି ଏହା ମୁହିଁ ପଶିଛୁ ସଂଗ୍ରାମେ, ନାହିଁ ମୋ ବିଚାର ମାନ ଅପମାନେ ।
ମିଶୁ ମୋର ଦେହ ଏ ଦେଶମାଟିରେ, ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼, ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା ପଥେ ଚଳେ ହେଲେ ନର, ମୋ ଜୀବନ ଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା, ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।



## ମହାଭାରତୀୟ ଗୋପବନ୍ଧୁ

"ହେ ଉତ୍କଳବାସୀ ମୋ ଭାଇ ଭଉଣି,
ମୋ ଦଣ୍ଡ-ବାରତା ସର୍ବେ ଥିବ ଶୁଣି ।
ଶୁଣି କି ହେ ମନେ କରୁଛ ଶୋଚନା ?
ଶୋଚନା କପାଁ ? ଏ ମୋ କର୍ମ ରଚନା ।
କହୁଥିଲି ପରା ବୁଲି ଗ୍ରାମ ଗ୍ରାମ,
'ଦେଶ ପାଇଁ ଦଶ ପାଇଁ କର କାମ,
ମିଳେ ଯଦ କାହା ସ୍ୱର୍ଗେ କାରାବାସ,
କାରାଗୃହଇ ସେ ପରମ ପ୍ରବାସ'

ହେ ଉତ୍କଳ ବାସି, ହେ ସ୍ୱଦେଶମାନ,
କର୍ମେ ଲାଗେ ସଦା ହେଉ ସାବଧାନ ।
ଚାଲ ଏହି ପଥେ ମିଳିବ ମୁକତି ·
ଘେନ ମୋର ଏହି ବିଦାୟ ବିନତି ।
ହୋଇଅଛୁ ଏବେ ଦିବା ଅବସାନ,
ଭଦରଖେ ଆସି ପହଞ୍ଚିଛୁ ଯାନ ।
ଭଦରଖ ମୋର ଅତି ପ୍ରିୟସ୍ଥାନ,
ଏଠା କର୍ମେ ମୋର ପହିଲି-ସମ୍ମାନ ।
ଏଠା ବାହାଦୂର ବଡ଼ ପରଚଣ୍ଡ,
ତାଙ୍କ ଦୟାରେ ମୋର ଆଦ୍ୟ କାରାଦଣ୍ଡ ।
ସାନ ବଡ଼ କେତେ କର୍ମୀ ନିଷ୍ଠାପର,
ଦେଖିଲେଣି କେତେ ଥର ମାମୁଘର ।
ତଥାପି ସ୍ୱରାଜ୍ୟ ଯୋଗ ନୁହେଁ ଊଣା,
ବଢ଼ଇ କର୍ମୀଙ୍କ ବଳ ଚତୁର୍ଗୁଣା ।
ପଡ଼ିଲେ ସମିଧ ଆହୁତି ଅନଳେ
ନ ଲିଭେ ସେ ପୁଣି ଦାଉ ଦାଉ ଜଳେ ।
ପଦାଘାତ କେହି କଲେ ନାଗ:ଚୂଳେ,
ନାଗ କି ପଳାଏ ପରାଣ ଆକୁଳେ ?
ଭଦରଖ କର୍ମୀ ଧନ୍ୟ ତୁମ୍ଭ ବଳ !
ଏପରି ସାଧକ ଲୋଡ଼ଇ ଉତ୍କଳ ।
ତେଜି ସବୁ ମାୟା ପରିବାର ଲୋଗ,
ସାଲନ୍ଦୀ ପୁଳିନେ ଆରମ୍ଭିଛୁ ଯୋଗ,
'ମନ୍ତ୍ର ସିଦ୍ଧି କିମ୍ବା ଶରୀର ପତନ'
ଜାଣେ ମୁଁ କରିଛୁ ଏହି ମହାପଣ ।
ଏହି ପଣ ଏକା ଭଦ୍ରଖ ଉଚିତ
ସାଧୁ ସମାଗମେ ଯା ରେଣୁ ପବିତ୍ର ।
ନୀଳାଚଳଯାତ୍ରୀ ପ୍ରେମିକ ନମାଇଁ ।

ଥିଲେ ପସ ଏଥି କେତେ ଦିନ ପାଇଁ ।
ସେ ଶୁଭଦିନର ପୁଣ୍ୟ ନିଦର୍ଶନ,
ରଖିଛୁ ଭଦ୍ରଖ କରି ଗଣ୍ଠି ଧନ ।
ଏବେ ପୁଣି ହେଲେ ଗାନ୍ଧି ମହାମତି
ଭଦ୍ରଖ ଅତିଥି ଅହିଂସା ମୂରତି ।
ଭଦ୍ରଖବାସୀ ହିନ୍ଦୁ ମୁସଲମାନ
ଏ ଆତିଥ୍ୟ ନୁହେ ସାମାନ୍ୟ ସମ୍ମାନ
ଉତ୍ତର କାଳକୁ ପୁଅ ନାତି ପାଇଁ
ଏ ସୌଭାଗ୍ୟ-ସ୍ମୃତି ରଖିବ ତ ଭାଇ ?
ଛାଡ଼ ତେବେ ମନୁଁ ଭେଦ ଅଭିମାନ,
ବେଦ କୋରାନରେ କର ସମଜ୍ଞାନ ।
ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟିୟାନ
ଶିଖ ଜୈନ ଯେତେ ଭାରତ ସନ୍ତାନ ।
ଯେତେ ଧର୍ମ, ଯେତେ ବର୍ଣ୍ଣ-ଜାତି-କୂଳ

ଭାରତ-ଜନନୀ ସମସ୍ତଙ୍କ ମୂଳ ।
ଏକ ଆଶା ଏକ ଲକ୍ଷ୍ୟ ଏକ ଧାନ,
ଏକଇ ଅନ୍ତୁଡ଼ି ଏକଇ ଶ୍ମଶାନ ।
ଏକ କର୍ମଖେଳ, ଏକ ମାତୃପଦେ
କର ଏକପ୍ରାଣ ସମ୍ପଦେ ବିପଦେ ।
ଏକତା ମନ୍ତ୍ରରେ ରଖ ସଦା ମତି
ହେବ ଏହି ଭାବେ ସ୍ୱରାଜ୍ୟ ପ୍ରାପତି ।
ଭଦରଖ ଭାଇ ହିନ୍ଦୁ ମୁସଲମାନ,
ଜାଣେ ମୁଁ ଧରିଛ ହୃଦେ ବଡ଼ ଠାଣ
କେତେ ପ୍ରଲୋଭନ, କେତେ ପ୍ରବଞ୍ଚନା,
କେତେ ବାଧାବିଘ୍ନ, କେତେ ଭୟମନା,
ଏଡ଼ିଅଛ ସବୁ ନିର୍ଭୀକ ଅନ୍ତରେ,
ଚାଲିଅଛ ଦମ୍ଭେ ସ୍ୱରାଜ ପଥରେ ।
ରଖ ଏହି ଦମ୍ଭ ହୁଡ଼ ନାହିଁ ସିନା,
ହୁଅନ୍ତୁ ବିପଦେ ପ୍ରଭୁ ତୁମ୍ଭ ସାହା ।

# ଶ୍ରୀ ବୈଦ୍ୟନାଥ ଆୟୁର୍ବେଦ ଭବନ

## ପ୍ରାଇଭେଟ ଲିଃ

# ବିକାଶର ଇତିହାସ

ଆଜକୁ ୪୪ ବର୍ଷ ଆଗରୁ ବିହାର ପ୍ରଦେଶ ଅନ୍ତର୍ଗତ ଶ୍ରୀ ବୈଦ୍ୟନାଥ ଧାମରେ ଏହି କାରଖାନା ପ୍ରତିଷ୍ଠିତ ହୋଇଥିଲା । ଏହାର ଉଦ୍ଦେଶ୍ୟ ଥିଲା ବିଶୁଦ୍ଧ ଓ ସଦ୍ୟ ଫଳପ୍ରଦ ଔଷଧ ନିର୍ମାଣ କରିବା । ସାଧୁ ଓ ମହତ୍ ଉଦ୍ଦେଶ୍ୟ କେବେ ହେଲେ ବିଫଳ ହୁଏ ନାହିଁ । ବୈଦ୍ୟନାଥ ଗୋଟିଏ ବିରାଟ ଅପ୍ରତିଦ୍ୱନ୍ଦୀ ପ୍ରତିଷ୍ଠାନ ରୂପେ ଦେଶ ମଧ୍ୟରେ ଗଢ଼ି ଉଠିଲା । ଜନତାର ଆବଶ୍ୟକତା ମେଣ୍ଟାଇବା ପାଇଁ ଆମ୍ଭେମାନେ କଲିକତା, ପାଟଣା, ଝାଁସୀ ଓ ନାଗପୁର ଅଞ୍ଚଳମାନଙ୍କରେ ବଡ଼ ବଡ଼ କାରଖାନାମାନ ପ୍ରତିଷ୍ଠା କରିବାକୁ ବାଧ୍ୟ ହେଲୁ । ସହସା କାମ ଦେବା ପାଇଁ ବହୁ ପେଟେଣ୍ଟ ଔଷଧମାନ ମଧ୍ୟ ନିର୍ମାଣ କରାଗଲା । ସର୍ବସାଧାରଣଙ୍କ ସୁବିଧା ପାଇଁ ଦିଲ୍ଲୀ, ଆଗ୍ରା, କାନପୁର, ଏଲାହାବାଦ, କାଶୀ, ଗୋରଖପୁର, ଭାଗଲପୁର, ମୁଜାଫରପୁର, ଗୟା, ରାୟପୁର, ବିଲାସପୁର, ଜବଲପୁର, ଆକୋଲା, ଅମରାବତୀ, ଇନ୍ଦୋର, ଉଜ୍ଜୟିନୀ, କଟକ, ସମ୍ବଲପୁର ପ୍ରଭୃତି ବଡ଼ ବଡ଼ ସହରମାନଙ୍କରେ ୪୫୦ରୁ ବେଶି ବିଶିଷ୍ଟ ଏଜେଣ୍ଟ ନିଯୁକ୍ତ କରିଅଛୁ । ଏମାନେ କେବଳ ବୈଦ୍ୟନାଥ ଔଷଧ ବିକ୍ରୟ କରନ୍ତି । ଏହାଛଡ଼ା ବୈଦ୍ୟନାଥ ସୂଚୀପତ୍ରରେ ଲେଖା ଥିବା ମୂଲ୍ୟ ଅନୁଯାୟୀ ଔଷଧ ବିକ୍ରୟ କରନ୍ତି । ବୈଦ୍ୟନାଥ ଔଷଧ ସେବନ କରୁଥିବା ଲୋକମାନଙ୍କର ସଂଖ୍ୟା କୋଟିଏରୁ ଅଧିକ ହେବ ।

# ଉନ୍ନତିର ଚାରୋଟି ଲକ୍ଷଣ

ଶ୍ରୀଶ୍ରୀ ବାବା ବୈଦ୍ୟନାଥଙ୍କର ଅପାର କରୁଣା ଓ ପୂର୍ବଜନ୍ମ

ସୁକୃତରୁ ଶ୍ରୀ ବୈଦ୍ୟନାଥ ଆୟୁର୍ବେଦ ଭବନ ପ୍ରାଇଭେଟ ଲିଃର ଉନ୍ନତର ମୂଳ କାରଣ ହେଲା ଗୁଡ଼ିଏ, (୧) ବିଶୁଦ୍ଧ ଔଷଧ ନିର୍ମାଣ (୨) ଯଥାର୍ଥ ମୂଲ୍ୟରେ ସେ ସବୁର ବିକ୍ରୟ, (୩) ଆୟୁର୍ବେଦର ଉନ୍ନତି ପାଇଁ ସସଂଗଠିତ ନିଷ୍ଠାପର କାର୍ଯ୍ୟ (୪) ବୈଜ୍ଞାନିକ ପଦ୍ଧତିରେ ଏ ସବୁର ପରିପ୍ରଚାର ।

## ବୈଦ୍ୟନାଥ ଔଷଧ ସବୁର ବିଶେଷତ୍ୱ

ଏହି କାରଖାନା ପରିଚାଳକ ମ୍ୟାନେଜିଂ ଡାଇରେକ୍ଟର ମହାଶୟ ଆୟୁର୍ବେଦର ଜଣେ ବଡ଼ ପଣ୍ଡିତ ଓ ଆୟୁର୍ବେଦ ପ୍ରତି ନିଷ୍ଠାବାନ । ପୂର୍ଣ୍ଣ ଶାସ୍ତ୍ରୀୟ ନିୟମରେ ଔଷଧ ପ୍ରସ୍ତୁତ ହେଲେ ତାହା ଯେ କାର୍ଯ୍ୟକାରୀ ହେବ ଏ ପ୍ରତି ସେ ସଦା ସଜାଗ । ବିଶୁଦ୍ଧ ଗଛ-ଗଛଡ଼ା ତଥା ବଣ ପର୍ବତରୁ ଗଛଗଛଡ଼ା ସଂଗ୍ରହ କରାଯାଇ ଔଷଧ ପ୍ରସ୍ତୁତ କରାଯାଏ ।

## ଧର୍ମାର୍ଥ ସେବା

ଏହି କାରଖାନାର ଅନେକଗୁଡ଼ିଏ ଧର୍ମ ସଂସ୍ଥା ଅଛି । ଏଥିରୁ ଲାଭର ଗୋଟିଏ ନିର୍ଦ୍ଦିଷ୍ଟ ଅଂଶ ଦାତବ୍ୟ କାର୍ଯ୍ୟରେ ବ୍ୟୟିତ ହୁଏ । ସହସ୍ର ସହସ୍ର ରୋଗୀଙ୍କୁ ବିନା ମୂଲ୍ୟରେ ଔଷଧ ବିତରଣ କରାଯାଏ । ଆହୁରି କେତେଗୁଡ଼ିଏ ଦାତବ୍ୟ ସଂସ୍ଥାକୁ ମଧ୍ୟ ଔଷଧ ବିନା ମୂଲ୍ୟରେ ଦାତବ୍ୟ ପାଇଁ ଦିଆଯାଏ ।

ବହୁ ଗରିବ ମେଧାବୀ ଛାତ୍ରଙ୍କୁ ବୃତ୍ତି ଦିଆଯାଏ । ଏହାଛଡ଼ା ଧର୍ମଶାଳା, ସାଧାରଣ ପାଠାଗାର, ଦେବାଳୟ, କଂଗ୍ରେସ ପ୍ରଭୃତି ଅନେକଗୁଡ଼ିଏ ଅନୁଷ୍ଠାନକୁ ଅର୍ଥ ସାହାଯ୍ୟ ଦିଆଯାଏ । ସତ ସାହିତ୍ୟ ପ୍ରଚାର, ଯାଗଯଜ୍ଞାଦି ଧର୍ମ କାର୍ଯ୍ୟରେ ମଧ୍ୟ ଅର୍ଥ ସାହାଯ୍ୟ ଦିଆଯାଏ ।

ଆୟୁର୍ବେଦର ଉନ୍ନତି ପାଇଁ ସଦ୍‌ଗ୍ରନ୍ଥାଦି ପ୍ରକାଶିତ ହୁଏ । ଆରୋଗ୍ୟ ପ୍ରକାଶନ ଏପରି ଗୋଟିଏ ଗ୍ରନ୍ଥ ଯାହାର ନିୟମ ମାନି ଚଳିଲେ ରୋଗ ଆକ୍ରମଣ କରେ ନାହିଁ ।



## ବାସ୍ତବିକ ପ୍ରଶଂସାର କଥା !

ପାଶ୍ଚାତ୍ୟ ଜଗତରେ ଔଷଧ ବିଜ୍ଞାନରେ ଗୋଟିଏ ନୂଆ ପ୍ରଚେଷ୍ଟା ଜୋରସୋରରେ ଚାଲିଛି । ସେହି ପ୍ରଚେଷ୍ଟା ହେଲା ରୋଗ ନିବାରଣ ସ୍ଥାନରେ ରୋଗ ଆରୋଗ୍ୟ ପ୍ରତି ବିଶେଷ ଧ୍ୟାନ ଦେବା ।

ଦିନ ଥିଲା, ଆମ ନିଜ ଦେଶରେ ରାଜା ଓ ବୈଦ୍ୟ ଉଭୟ ଏଥି ପ୍ରତି ଖୁବ୍ ଦୃଷ୍ଟି ଦେଉଥିଲେ । ଏହି ସ୍ୱାସ୍ଥ୍ୟ କଲ୍ୟାଣ କାର୍ଯ୍ୟରୁ କୌଣସି ରକମ ଆୟ ସେମାନେ କରୁନଥିଲେ । ରାଜା ଓ ବୈଦ୍ୟ ଉଭୟେ ତ୍ୟାଗୀ ଥିଲେ ।

କିନ୍ତୁ, ଆଜିକାଲି ଯୁଗରେ ଯେଉଁମାନେ ଔଷଧ ନିର୍ମାଣ କରୁଛନ୍ତି, ସେମାନେ ଏଥିପାଇଁ ମୂଲ୍ୟ ନେଉଛନ୍ତି । କାରଣ ଏ ହେଲା ସଂଘର୍ଷର ଯୁଗ । ଏଯୁଗରେ ନିଜ କାର୍ଯ୍ୟକୁ ବଜାୟ ରଖିବାକୁ ହେଲେ ପ୍ରଭୂତ ସଂଘର୍ଷର ସମ୍ମୁଖୀନ ହେବାକୁ ପଡ଼େ ।

ଏହି ଦୃଷ୍ଟିକୋଣରୁ ଶ୍ରୀବୈଦ୍ୟନାଥ ଆୟୁର୍ବେଦ ଭବନ ପ୍ରାଇଭେଟ ଲିଃଙ୍କୁ ମୁଁ ପ୍ରଶଂସା ନକରି ରହିପାରୁ ନାହିଁ ! ଏହା ଯୁଳିଶ ବର୍ଷର ଗୋଟିଏ ବୃହତ୍ ପ୍ରାଚୀନ ଆୟୁର୍ବେଦୀୟ ପ୍ରତିଷ୍ଠାନ । ଏହି ପ୍ରତିଷ୍ଠାନ ପରୋପକାର କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରି ଜନତା ଜନାର୍ଦ୍ଦନଙ୍କ ସେବାରେ ନିଜକୁ ନିୟୋଜିତ କରିଛନ୍ତି ।

—ପଟ୍ଟାଭି ସୀତାରାମେୟା

Janabani Printers & Publishers Private Ltd., Calcutta-3

ମାତୃ ଦୁଗ୍ଧସମ

ବିଶୁଦ୍ଧ ଓ ଉପକାରୀ

# ବୈଦ୍ୟନାଥ

# ଔଷଧ ସମୂହ

ବ୍ୟବହାର କରି

ସ୍ୱାସ୍ଥ୍ୟରକ୍ଷା କରନ୍ତୁ




# ଶ୍ରୀ ବୈଦ୍ୟନାଥ

## ଆୟୁର୍ବେଦ ଭବନ ପ୍ରାଇଭେଟ ଲିଃ

କଲିକତା, ପାଟଣା, ଝାଁସୀ, ନାଗପୁର ।